# ଆମ ଲୋକଙ୍କ କାହାଣୀ



ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

Digitized by srujanika@gmail.com

# ଆମ ଲୋକ କାହାଣୀ

( ଦ୍ୱିତୀୟ ଭାଗ )

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର



ଓଡ଼ିଶା ବୁକ୍ ଷ୍ଟୋର

Digitized by srujanika@gmail.com

# ଆମଲୋକ କାହାଣୀ

## ଦ୍ୱିତୀୟ ଭାଗ

୨

## ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**

ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୮

ମୁଦ୍ରାକର :

**ଶ୍ରୀକୃଷ୍ଣ ପ୍ରେସ**

ଶେଖବଜାର

କଟକ-୭୫୩୦୦୮

ମୂଲ୍ୟ—ଚାରିଟଙ୍କା ମାତ୍ର

୧ । ମାଛରଙ୍କା ଓ ମାଛ — ୧

୩ । ଛତୁ — ୧୦

୪ । ବାଘ ଓ ମାଙ୍କଡ଼ର ଶତ୍ରୁତା — ୧୪

୫ । ହଜି ଯାଇଥିବା ଜିନିଷ — ୨୦

୬ । ଫଳଚୋପା — ୨୯

୭ । ହୁକେ ହୁକେ ହୋ — ୩୫

Digitized by srujanika@gmail.com

# ଆମ ଲୋକ କାହାଣୀ

## ମାଛରଙ୍କା ଓ ମାଛ

ଆଗକାଳରେ ଗୋଟିଏ ବୁଢ଼ା ଥିଲା । ତାହାର ଆଉ କେହି ନ ଥିଲେ । ଅତି ଗରିବ ସେ । ବାରଦ୍ୱାର ଭିକ ମାଗି ପେଟ ପୋଷେ । ଦିନଯାକ ଏ ଗ୍ରାମରୁ ସେ ଗ୍ରାମ ବୁଲିବୁଲି ଥକିଯାଏ । କେଉଁ ଦିନ ମୁଠାଏ ଖାଇବାକୁ ମିଳେ ତ କେଉଁ ଦିନ କିଛି ମିଳେ ନାହିଁ । ବୁଢ଼ା ଭୋକ ଉପାସରେ ଶୋଇପଡ଼େ ।

ଏହିପରି ବହୁ ଦୁଃଖକଷ୍ଟରେ ତା ଦିନ କଟୁଥାଏ ।

ବୁଢ଼ା କେତେ ଦିନ ବା କଷ୍ଟ ସହିବ ? ଉପାସ ରହିରହି ତା ଦେହ ଶୁଖି ହାଡ଼ମାଳ ହୋଇଗଲା ।

ସେ ଆଉ ବେଶି ଦିନ କଷ୍ଟ ସହିପାରିଲା ନାହିଁ । ବଣ ଭିତରକୁ ଯାଇ ଈଶ୍ୱର ପାର୍ବତୀଙ୍କୁ ପ୍ରାର୍ଥନା କଲା । ବହୁ ଦିନ ତପ କଲାପରେ ପାର୍ବତୀ ତାକୁ ଦେଖାଦେଲେ । ପଚାରିଲେ, "ତୋର କଅଣ ଦରକାର ?"

ବୁଢ଼ା ହାତଯୋଡ଼ି କହିଲା, "ମୁଁ ଆଉ କେତେ ଦିନ ଏପରି ଦୁଃଖକଷ୍ଟ ସହିବି ? ଯେପରି ସୁବିଧାରେ ମୋ ପେଟ ପୋଷି ପାରିବି, ମୋର ସେହି ବ୍ୟବସ୍ଥା କରିଦିଅ ।"

Digitized by srujanika@gmail.com

ପାର୍ବତୀ କହିଲେ; "ତୁ ଯାହା ଅର୍ଜିଛୁ, ତା ଭୋଗିବୁ । ତୋ ଜୀବନଯାକ ଏହିପରି ଭିକ ମାଗିମାଗି କଟିବ । ତେବେ ଭିକ ମାଗିବାଟା ଯେପରି ସୁବିଧାରେ ହେବ, ତାହାର ବ୍ୟବସ୍ଥା ମୁଁ କରି ଦେଉଅଛି ।"

ଏହା କହି ପାର୍ବତୀ ତା ହାତରେ ଲାଉଟିଏ ଦେଲେ । କହିଲେ, "ଏଥିରେ ଗୋଟିଏ କଣା କରିଦେବୁ, ଭିତରୁ ଶସତକ କାଢ଼ି ପକାଇବୁ । ତା ନାମ ହେବ 'ଥାଳ' । ଥାଳ ଧରି ବୁଲିଲେ, ଲୋକେ ନିଶ୍ଚୟ ଭିକ ଦେବେ । ପ୍ରତିଦିନ କିଛି ହେଲେ ମିଳିବ । ତେଣେ ସବୁ ଦିନ ଖାଇବାକୁ ପାଇବୁ । ସେହି ଥାଳରେ ପାଣି ଆଣି ରୋଷାଇ କରିବୁ, ଭାତ ଖାଇବୁ, ପାଣି ପିଇବୁ ।"

ବୁଢ଼ା ଲାଉଟି ଧରି ସେଠାରୁ ଆସିଲା । ପାର୍ବତୀଙ୍କ କଥା ଅନୁସାରେ ସେଥିରେ ଗୋଟିଏ କଣା କରି ଭିତରୁ ଶସତକ ବାହାର କରିଦେଲା । ଖୋଳକୁ ଶୁଖାଇ ଥାଳ କଲା । ସେ ଥାଳ ଧରି ଗାଁ ଗାଁ ବୁଲି ଭିକ ମାଗିଲା ।

ଦିନେ ବୁଢ଼ା ନଈକୂଳରେ ବସି ଭାତ ରାନ୍ଧୁଥିଲା । ଥାଳଟି ତଳେ ଥୁଆ ହୋଇଥାଏ । ସେ ଥାଳଭିତରେ ପବନ ପଶି ଶବ୍ଦ ହେଉଥାଏ—ସୁଉଉ, ସୁଉଉ ।

ନଈରେ ବହୁତ ମାଛ ଥିଲେ—ବଡ଼ ମାଛ, ମଝିଭଳିଆ ମାଛ, ସାନ ମାଛ । ସେମାନେ ଏ ସୁଉସୁଉ ଶବ୍ଦ ଶୁଣିଲେ ।

Digitized by srujanika@gmail.com

ନିଜ ଭିତରେ କୁହାକୁହି ହେଲେ, "ଆମକୁ ସଙ୍ଗୁଳିବା ଲାଗି କିଏ ଜଣେ ଆସିଅଛି । ସେ ମାଟିଉପରେ ଅପେକ୍ଷା କରୁଅଛି । ଚାଲ ଯିବା, ତାକୁ ଦେଖି ଆସିବା ।"

ସବୁ ମାଛ ଡକାଡକି ହୋଇ ଏକାଠି ନଈକୂଳକୁ ଆସିଲେ । ସମସ୍ତେ ଦେଖିଲେ, ବୁଢ଼ାଟିଏ ବସିଅଛି; ଆଗରେ ନିଆଁ ଜଳୁଅଛି ।

ବାଳିଆମାଛ ସେ ମାଛମାନଙ୍କର ରାଜା । ସେ ସବୁ ମାଛଙ୍କ ଆଗେ ଆଗେ ଥାଏ । ସେ ଆସି ବୁଢ଼ାକୁ ପଚାରିଲା, "ତୁମେ କିଏ ?"

ବୁଢ଼ା ଉତ୍ତର ଦେଲା, "ମୁଁ ତୁମ ପିତାଙ୍କର ପିତା, ମୋତେ ଅଜା ବୋଲି ଡାକିବ ।"

ମାଛରାଜା ପୁଣି ପଚାରିଲା, "ତୁମେ କୁଆଡ଼େ ଆସିଅଛ ?"

ବୁଢ଼ା କହିଲା, "ମୁଁ ତୁମମାନଙ୍କୁ ସଙ୍ଗୁଳିବା ପାଇଁ ଆସିଅଛି ।"

"ଆମପାଇଁ କଅଣ ଆଣିଅଛ ?" ପୁଣି ବାଳିଆ ମାଛ ପଚାରିଲା ।

ବୁଢ଼ା ଲାଉଥାଳ ଦେଖାଇ ଦେଇ କହିଲା, "ଏହି ଯନ୍ତ୍ରଟି ଆଣିଅଛି । ଏହା କପରି ସୁନ୍ଦର ବାଜୁଅଛି ଶୁଣିଅଛ ତ ?"

Digitized by srujanika@gmail.com

ଏହି ସମୟରେ ପବନ ଟିକିଏ ଯୋର୍‌ରେ ବହିଲା । ଲାଉତୁମ୍ବାରୁ ଶବ୍ଦ ବାହାରିଲା—ଧୁଉଡ ଧୁଉଡ ।



ସେ ଶବ୍ଦ ଶୁଣି ମାଛଯାକ ନାଚିବାକୁ ଲାଗିଲେ । ମାଛ-ରାଜା ନାଚିଲା, ବଡ଼ବଡ଼ ମାଛ ନାଚିଲେ, ସାନସାନ ମାଛ ବି ନାଚିଲେ । ନାଚି ନାଚି ସମସ୍ତେ ବେଦମ ହୋଇଗଲେ ।

କ୍ରମେ ରାତି ହେଲା; ମାଛମାନେ ନିଜନିଜ ଘରକୁ ଯିବା ପାଇଁ ବାହାରିଲେ ।

ବୁଢ଼ା କହିଲା, "ମୁଁ ରାତିରେ ଶୋଇବି କେଉଁଠାରେ ?"

ବାଳିଆ ଉତ୍ତରଦେଲା, "ଆସ, ମୋ ପେଟଭିତରେ ନିଶ୍ଚିନ୍ତରେ ଶୋଇବ । ରାତିପାହିଲେ ପେଟଭିତରୁ ବାହାରି ଆସିବ ।"

ବୁଢ଼ା ଏଥିରେ ରାଜି ହେଲା । ବାଳିଆ ପାଟି ମେଲାକରି ଦେବାରୁ ବୁଢ଼ା ସେହି ପାଟିବାଟେ ତା ପେଟ ଭିତରକୁ ଚାଲିଗଲା । ସେହିଠାରେ ଶୋଇରହି ରାତିଟି କଟାଇଦେଲା ।

Digitized by srujanika@gmail.com

ଶବ୍ଦ ପାଇଲା, ବୁଢ଼ାର ନିଦ ଭାଙ୍ଗିଗଲା । ସେ ମାଛପେଟରୁ ପଦାକୁ ବାହାରି ଆସିଲା ।



( ମାଛ ପେଟକୁ ବୁଢ଼ା ଯାଉଛି )

ପବନମୁହାଁ କରି ଥାଳଟି ରଖିଦେବାରୁ ତାହା ପୂର୍ବପରି ଶବ୍ଦ କଲା ଝୁଉଉ ଝୁଉଉ । ମାଛମାନେ ସେ ଶବ୍ଦ ଶୁଣି ଖୁସିହେଲେ, ପୂର୍ବପରି ନାଚିବାକୁ ଲାଗିଲେ ।

ବୁଢ଼ା ସେଠାରେ ରାତିରେ ବଡ଼ ମାଛର ପେଟ ଭିତରେ ଶୁଏ । ଦିନ ହେଲେ ତା ଲାଉଥାଳ ବଜାଇ ମାଛମାନଙ୍କୁ ନଚାଏ । ସମୟ ଦେଖି ପାଖଆଖ ଗ୍ରାମକୁ ଯାଇ ଭିକ ମାଗି ଆଣେ । ନଈକୂଳରେ ତାକୁ ରାନ୍ଧି ଖାଏ ।

ବୁଢ଼ା ଦିନେ ମନେ ମନେ ଭାବିଲା, "ଏ ମାଛମାନଙ୍କୁ ଖାଇବି ।"

ସେ ଯାନ ମାଛମାନଙ୍କୁ ଲାଉଥାଳ ଦେଖାଇ କହିଲା, "ସେ ଯନ୍ତ୍ରଭିତରେ ବହୁତ ମଜା ଜିନିସ ଦେଖିବାକୁ ଅଛି, ତା ଭିତରକୁ ଯାଅ, ଦେଖିବ ।"

Digitized by srujanika@gmail.com

ଅଜାଠାରୁ ଏହା ଶୁଣି ସାନ ମାଛ ସବୁ ତା ଭିତରକୁ ଗଲେ । ମାତ୍ର ଆଉ ପଦାକୁ ଆସିପାରିଲେ ନାହିଁ । ବୁଢ଼ା ସେମାନଙ୍କୁ ତରକାରୀ କରି ଆନନ୍ଦରେ ଖାଇଲା । ସେ ତରକାରୀ ବୁଢ଼ାକୁ ଖୁବ୍ ଭଲ ଲାଗିଲା । ସେହି ଦିନଠାରୁ ସେ ପ୍ରତିଦିନ ସାନମାଛ ସବୁ ଲୁଚାଇ ଧରି ରଖେ, ସେମାନଙ୍କୁ ରାନ୍ଧି ଖାଏ ।

ବୁଢ଼ା କେତେ ଦିନ ଏହିପରି ଖାଇବାରୁ ସାନମାଛତକ ସରିଗଲେ ।

ବାଲିଆ ମାଛ ଦେଖିଲା, ତା ରାଜ୍ୟରୁ ମାଛ କମିକମି ଯାଉଅଛନ୍ତି । ଏହାର କାରଣ କଅଣ ସେ ବୁଝିପାରିଲା ନାହିଁ ।

ଦିନେ ସେ ଭଗରିକୁ ଡାକି ହୁକୁମଦେଲା, "ଆମର ପର୍ବ-ଦିନ ଆସିଗଲା । ନଈର ସବୁ ମାଛଙ୍କୁ ଖବରଦିଅ । ସମସ୍ତେ ଆସି ଏକାଠି ହୁଅନ୍ତୁ । ପର୍ବ ପାଳନ କରିବା, ନାଚିବା ।"

ଭଗରିମାଛ ଏ ଖବର ଚାରିଆଡ଼େ ପ୍ରଚାର କରିଦେଲା । ସମସ୍ତେ ଆସି ରାଜା ପାଖରେ ରୁଣ୍ଡ ହେଲେ । ରାଜା ଦେଖିଲା, ବଡ଼ମାଛ ସବୁ ଆସିଲେ; ସାନମାଛ ନାହାନ୍ତି । ସେ ପଚାରିଲା, "ସାନମାଛ ସବୁ କାହାନ୍ତି ? ସେମାନେ କାହିଁକି ଆସିଲେ ନାହିଁ ?"

କିଏ କହିଲା, "ମୋ ପୁଅକୁ ଗଲା କେତେ ଦିନ ହେଲା ମୁଁ ଆଉ ପାଉ ନାହିଁ ।" କିଏ କହିଲା, "ମୋ ସାନଭାଇ କୁଆଡ଼େ ପଳାଇଯାଇଅଛି ।" ଆଉ କିଏ କହିଲା, "ମୋ ଭଉଣୀ

Digitized by srujanika@gmail.com

ଅଜାବୁଢ଼ାକୁ ଦେଖିବାକୁ ଯାଇଥିଲା, ଆଉ ଫେରିଆସି ନାହିଁ ।"
ମାଛ ରାଜା ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲା ।

ବୁଢ଼ା ଭିକ ମାଗିବାକୁ ଯାଇଥାଏ । ମାଛମାନେ ବିଚାର କଲେ, "ଚାଲ ଦେଖିବା, ବୁଢ଼ା ଯନ୍ତ୍ରରେ କଅଣ ରଖିଅଛି ? ଆମ ବଂଶ କାହିଁକି କମିଯାଉଅଛନ୍ତି ? କଅଣ ହେଉଅଛି ?

ବଡ଼ବଡ଼ ମାଛମାନେ ଯନ୍ତ୍ର ଦେଖିବାକୁ ଗଲେ । ରାଜା ମଧ୍ୟ ତାଙ୍କ ସାଙ୍ଗରେ ଥାଆନ୍ତି ।

ସେମାନେ ଦେଖିଲେ, ଥାଳର ମୁହଁଟି ଅତି ସରୁ । ତା ଭିତରେ କେବଳ ସାନମାଛ ପଶି ପାରିବେ । ସେମାନଙ୍କ ଭିତରେ ଯେ ସାନ ଥିଲେ, ସେମାନେ ଥାଳ ଭିତରେ ପଶିଲେ; ମାତ୍ର ଆଉ ପଦାକୁ ବାହାରି ପାରିଲେ ନାହିଁ ।

ବଡ଼ବଡ଼ ମାଛମାନେ କଥାବାର୍ତ୍ତା ହେଲେ, "ଅଜାବୁଢ଼ା ଏହାରି ଭିତରେ ପୂରାଇ ସାନ ସାନ ମାଛଙ୍କୁ ବନ୍ଦୀ କରି ରଖିଅଛି ।"

ବାଳିଆ କହିଲା, "ସେ ତ ରାତିରେ ମୋ ପେଟ ଭିତରେ ଶୋଉଅଛି । ତା ହେଲେ ମୁଁ ମଧ୍ୟ ତାକୁ ଏହିପରି ବନ୍ଦୀ କରି ରଖିବି ।"

Digitized by srujanika@gmail.com

ଭିକ ମାଗି ବୁଢ଼ାଅଜା ଫେର ଆସିଲା । ପୂର୍ବପର ସେଠାରେ ରୋଷାଇ କଲା । ଥାଳ ଭିତରେ ରହିଥିବା ମାଛତକ ବାହାର କରି ତରକାରି କଲା । ଆନନ୍ଦମନରେ ଖାଇଲା ।

ରାତି ହେଲା । ସେ ବାଳିଆକୁ କହିଲା, "ନାତି ! ପାଟି ମେଲାକର; ମୁଁ ଶୋଇବାକୁ ଯିବି ।"

ବାଳିଆ ପାଟି ମେଲାକଲା । ବୁଢ଼ା ପାଟିବାଟେ ତା ପେଟ-ଭିତରକୁ ଯାଇ ନିଶ୍ଚିନ୍ତରେ ଶୋଇଲା ।

ସେ ରାତି ପାହି ସକାଳ ହେଲା । ବୁଢ଼ାର ନିଦ ଭାଙ୍ଗିଲା; କିନ୍ତୁ ସେ ପଦାକୁ ଆସିପାରୁ ନାହିଁ । ବାଳିଆ ପାଟି ମେଲା କଲେ ଯିନା ସେ ଆସିବ । ବାଳିଆ ଆଉ ଜମା ପାଟି ମେଲା କଲା ନାହିଁ । ଦୁଇ ଓଠ କାମୁଡ଼ି ଚପି ଧରିଲା । ବୁଢ଼ା ବହୁତ ଡାକିଲା, ପାଟି କଲା । କହିଲା, "ନାତି ! ପାଟି ମେଲାକର; ମୁଁ ପଦାକୁ ଯିବି ।" ମାତ୍ର ବାଳିଆ ମୋଟେ ସେ କଥା ଶୁଣିଲା ନାହିଁ କି ଆଁ କଲା ନାହିଁ । ବୁଢ଼ା ତା ପେଟ ଭିତରେ ରହି ଉପଯୁକ୍ତ ଦଣ୍ଡ ପାଇଲା । ଦିନକ ପରେ ସେ ସେହିଠାରେ ମରିଗଲା ।

ଖାଲି ମରିଗଲା ନାହିଁ, ବାଳିଆ ପେଟରେ ତାହାର ହାଡ଼ ମାଂସ ହଜମ ବି ହୋଇଗଲା । କେବଳ ଖଣ୍ଡେ ହାଡ଼ ଥାଏ । ବହୁତ ଦିନଯାଏ ସେ ହାଡ଼ଖଣ୍ଡକ ଆଉ ହଜମ ହେଲା ନାହିଁ ।

Digitized by srujanika@gmail.com

ବାଳଆ ଝଟନେ ବାନ୍ତକରି ପକାଇଲା । ବାନ୍ତରେ ସେ ହାଡ଼ ଖଣ୍ଡିକ ବାହାରି ଆସିଲା । ପଦାକୁ ଆସିବା ସଙ୍ଗେ ସଙ୍ଗେ ତାହା ଗୋଟିଏ ଚଢ଼େଇ ହୋଇ ଆକାଶକୁ ଉଡ଼ିଗଲା ।

ସେହି ହେଲା 'ମାଛରଙ୍କା' ଚଢ଼େଇ । ମାଛଙ୍କ ଉପରେ ତାହାର ବଡ଼ ରାଗ । ସେ ପାଣିକୂଳରେ ଆସି ଚୁପ୍ ହୋଇ ବସି ରହେ । ଯେତେବେଳେ ଶବ୍ଦ କରେ—ସୁଉଉ, ସୁଉଉ । ଶବ୍ଦ ଶୁଣି ପାଣି ଭିତରୁ ମାଛତକ ତା ପାଖକୁ ଆସନ୍ତି, ନାଚନ୍ତି, ଖେଳନ୍ତି । ମାଛରଙ୍କା ଛକ ଛକ ସେମାନଙ୍କୁ ଧରି ଖାଏ ।

ସେ ବଡ଼ ଦୁଷ୍ଟ, ଭାରି ଚତୁର । ଯେତେବେଳେ ପାଣି-କୂଳରେ ବସିଥାଏ, ଯେତେବେଳେ ଭାରି ଶାନ୍ତ ଦେଖାଯାଏ; ସତେ ଯେପରି ବଡ଼ ସାଧୁ, କିଛି ଜାଣେ ନାହିଁ । ବସିରହି କେବଳ ସୁଯୋଗ ଉଣ୍ଡୁଥାଏ । ସୁବିଧା ପାଇଲେ ମାଛକୁ ଝାମ୍ପକରି ଥଣ୍ଟରେ ଧରି ଗିଳିଦିଏ ।

ମାଛମାନେ ତା କୌଶଳ ବୁଝି ପାରନ୍ତି ନାହିଁ । ତା ସୁଉ ଧୁଉ ଶବ୍ଦ ଶୁଣି ଭୁଲି ଯାଆନ୍ତି । ତା ପାଖରେ ଆସି ଖେଳନ୍ତି, ନାଚନ୍ତି । ତେଣୁ ସେ ମାଛ ଖାଇବାକୁ ସୁବିଧା ପାଏ ।

———

Digitized by srujanika@gmail.com

# ଛତୁ

ବହୁତ ଦିନ ତଳର କଥା । ଗୋଟିଏ ଗ୍ରାମରେ କୁମ୍ଭାକର୍ଣ୍ଣ ଏବଂ ତା ସ୍ତ୍ରୀ ସିଦ୍ଧିବର୍ଦ୍ଧି ବାସ କରୁଥିଲେ । କୁମ୍ଭାକର୍ଣ୍ଣ ପ୍ରତିଦିନ ସକାଳୁ ଉଠି ବିଲକୁ ହଳ କରିବାକୁ ଚାଲିଯାଏ । ସିଦ୍ଧିବର୍ଦ୍ଧି ଘରେ ରହେ । ଘରେ ତ ଖାଲି ବସିରହେ ନାହିଁ, ସେ କୁକୁଡ଼ା ଜଗେ, ଘରର କାମ କରେ, ଭାତ ତରକାରୀ ରାନ୍ଧେ । ଖରାବେଳେ କୁମ୍ଭାକର୍ଣ୍ଣ ପାଖକୁ ଖାଇବା ପଦାର୍ଥ ଧରି ଯାଏ ।

ଦିନେ କୁମ୍ଭାକର୍ଣ୍ଣ ସକାଳୁ ଉଠି ବିଲକୁ ଚାଲିଗଲା । ସିଦ୍ଧି-ବର୍ଦ୍ଧି ଘର କାମସାରି ରାନ୍ଧିବାକୁ ବାହାରିଲା । ମାତ୍ର ରାନ୍ଧିବ କଅଣ ? ଘରେ ଯେ ମୁଠାଏ ଚାଉଳ ନାହିଁ ।

ସିଦ୍ଧିବର୍ଦ୍ଧି ବଡ଼ ଭାବନାରେ ପଡ଼ିଲା । ସେ କଅଣ ରାନ୍ଧିବ, ବିଲକୁ କଅଣ ନେବ—ତାହା କିଛି ଠିକ୍ କରିପାରିଲା ନାହିଁ ।

ଘର ଭିତରଯାକ ଖୋଜି ଖୋଜି କେତେଗୁଡ଼ିଏ ମକା-ମଞ୍ଜି ପାଇଲା । ସେଗୁଡ଼ିକ ସଂଗ୍ରହକରି ଆଣିଲା, ଖରାରେ ଶୁଖାଇଲା ତାହାପରେ ପଥରରେ ରଖି ଚୂରିଲା । ସେହି ମକାଚୂନାରେ ଜାଉ ରାନ୍ଧି ଲାଉଥାଳରେ ଧରି ବିଲକୁ ଗଲା । ଏହି କାମ କରୁ କରୁ ବହୁତ ବିଳମ୍ବ ହୋଇଗଲା ।

ତେଣେ କୁମ୍ଭାକର୍ଣ୍ଣ ହଳ ବୁଲାଇ ବୁଲାଇ କ୍ଲାନ୍ତ ହୋଇ ପଡ଼ିଲାଣି । ଦିନ ଦୁଇପହର; ମୁଣ୍ଡଉପରେ ଖରା ଟାଇଁ ଟାଇଁ ମାରୁଅଛି । ଭୋକରେ କୁମ୍ଭାକର୍ଣ୍ଣର ପେଟ ପୋଡ଼ିବାରେ ଲାଗିଛି ।

Digitized by srujanika@gmail.com

ଶେଷକୁ ଭୋକ ଏତେ ବେଶି ହେଲା ଯେ, କୁମ୍ଭୀରକୁଟୁଂ ଆଉ ହଳ ବୁଲାଇ ପାରିଲା ନାହିଁ । ସେ ହଳ ଛାଡ଼ିଦେଇ ଆସି ଗୋଟିଏ ଗଛମୂଳେ ପାଖରେ ବସିପଡ଼ିଲା । କେତେବେଳେ ସିଦ୍ଧିବୁଡ଼ା ଆସି ଖାଇବାକୁ ଦେବ ସେହି ସମୟକୁ ଚାହିଁ ରହିଲା ।

ଏହିପରି ଚାହିଁ ଚାହିଁ ବହୁତ ବେଳ ଗଡ଼ିଗଲା ।

ସୂର୍ଯ୍ୟ ଦେବତା କ୍ରମେ ପଶ୍ଚିମ ଦିଗକୁ ଢଳିଲେ ।

କୁମ୍ଭୀରକୁଟୁଂ ସିଦ୍ଧିବୁଡ଼ା ଆସିବା ବାଟକୁ ଚାହିଁ ବସିଥାଏ ।

ବହୁ ସମୟପରେ ସିଦ୍ଧିବୁଡ଼ା ଜାଉ ଧରି ସେଠାରେ ପହଞ୍ଚିଲା । ତାକୁ ଦେଖି କୁମ୍ଭୀରକୁଟୁଂ ଖୁବ୍ ରାଗିଗଲା । ସେ ପଚାରିଲା, "ଆଜି ଏତେ ଡେରି ହେଲା କାହିଁକି ?"

ସିଦ୍ଧିବୁଡ଼ା ସମସ୍ତ କଥା କହିଗଲା । କୁମ୍ଭୀ ସବୁ ଶୁଣିଲା; ତଥାପି ତା ରାଗ ଶାନ୍ତ ପଡ଼ିଲା ନାହିଁ, ବରଂ ବେଳକୁବେଳ ବଢ଼ିବାକୁ ଲାଗିଲା ।

ସିଦ୍ଧିବୁଡ଼ା ଜାଉତକ ତା ଆଗରେ ଥୋଇଦେଲା ।

କୁମ୍ଭୀ ତ ରାଗରେ ଜଳୁଅଛି । ସେ ସାଙ୍ଗେ ସାଙ୍ଗେ ଜାଉତକ ଗଛମୂଳେ ଉପରକୁ ଫୋପାଡ଼ିଦେଲା । ହଳ କରୁଥିବା ପାଞ୍ଚଣବାଡ଼ି ଧରି ସିଦ୍ଧିବୁଡ଼ାକୁ ଖୁବ୍ ପିଟିଲା ।

Digitized by srujanika@gmail.com

କ୍ରମେ ରାତହେଲା । ସ୍ୱାମୀ ଓ ସ୍ତ୍ରୀ ଘରକୁ ଫେରିଲେ। ସିଦ୍ଧିବରାଡ଼ ସାହୁରୁ ଚାଉଳ ଧାର ଆଣିଲା । ତାକୁ ରାନ୍ଧି ଜୁମ୍ରାକୁ ଖାଇବାକୁ ଦେଲା । ଭୋକ ମରିଯିବାରୁ ଜୁମ୍ରାର ରାଗ ଶାନ୍ତହେଲା ।



( ଜୁମ୍ରା ଓ ସିଦ୍ଧିବରାଡ଼ )

ରାତ ପାହିଲା । ସିଦ୍ଧିବରାଡ଼ ଦେଖିଲା, କାଲି ଜୁମ୍ରା ତା ପିଠିରେ ଯେଉଁଠି ପିଟିଥିଲା, ସେଠାରେ ଗୋଟିଏ ଵଅ ହୋଇ-ଯାଇଅଛି । ଵଅ ଭିତରେ ପୂଜ ପୂରି ରହିଛି । ସେ ଜାଗାଟା ଏତେ ଦରଜ ଯେ, ସେଠାରେ ହାତ ଦେଇ ହେଉ ନାହିଁ ।

ଜୁମ୍ରା ଏହା ଦେଖିଲା । ହଳକାମ ତ ଆଉ ବନ୍ଦ ହେବ ନାହିଁ । କାମ ଦିନେ ବନ୍ଦ ହେଲେ ବସୁମାତା ରାଗିବେ, ଆଉ ଖାଇବାକୁ ଦେବେ ନାହିଁ ।

Digitized by srujanika@gmail.com

ସିଦ୍ଧିବରାଡ଼ ମନା କରୁଥିଲେ ମଧ୍ୟ କୁମ୍ରା ବଳକୁ ଚାଲିଗଲା । ସେଠାକୁ ଯାଇ ଦେଖିଲା, ଯେଉଁ ଉଇହୁଙ୍କା ଉପରକୁ ସେ କାଲି କାଉ ଫୋପାଡ଼ ଦେଇଥିଲା, ସେଠାରେ ଧଳାଧଳା ହୋଇ ଗୁଡ଼ାଏ କଅଣ ଫଳିଅଛି ।

କୁମ୍ରା ତା ପାଖକୁ ଗଲା । ଦେଖିଲା, ତାହା ଏକ ପ୍ରକାର ଗଛ । ମଞ୍ଜି ନାହିଁ, ଗଛ ଉଠିଛି—ଏହା ଦେଖି କୁମ୍ରା ଆଶ୍ଚର୍ଯ୍ୟ ହୋଇଗଲା ।

ସେ ଆଉ ହଳ କରିବ କଅଣ ? ଯାଇ ସେହି ଗଛଗୁଡ଼ିକ ଉପାଡ଼ି ଆଣିଲା ।

ସେ ଗଛ ସବୁ କାଉ ଭଳି ନରମ, ଧଳା । କୁମ୍ରା ସେଥିରୁ ଅଣ୍ଟିଏ ଉପାଡ଼ି ଆଣି ଘରେ ସିଦ୍ଧିବରାଡ଼କୁ ଦେଲା । ସିଦ୍ଧିବରାଡ଼ ତାହାକୁ ରାନ୍ଧିଲା ।

ଖାଇବାରୁ ଜଣାଗଲା, ତାହା ଭାରି ଭଲ ଜିନିଷ । ସେହିଦିନୁ ସବୁ ଲୋକେ ଯାଇ ସେ ଠିକ ଗଛ ଉପାଡ଼ିଲେ, ତାକୁ ରାନ୍ଧି ଖାଇଲେ । ତାହା ଖୁବ୍ ଭଲ ଲାଗିଲା । ଲୋକେ ତା ନାମ ଦେଲେ 'ଛତୁ' । ବସୁମାତାଙ୍କୁ ନିବେଦନ କଲେ, "ମା, ଆମଙ୍କୁ ଏହା ସବୁ ସମୟରେ ଦିଅ ।"

ବସୁମାତା କହିଲେ, "ତୁମେ ସିଦ୍ଧିବରାଡ଼କୁ ମାଡ଼ ଦେଇଅଛ, ତେଣୁ ଛତୁ ସବୁ ସମୟରେ ମିଳିବ ନାହିଁ । ବର୍ଷକେ କେବଳ ଥରେ ମିଳିବ ।"

Digitized by srujanika@gmail.com

ସିଦ୍ଧିବର୍ଦ୍ଧ ଅଭିଶାପ ଦେଲା, "ମାଡ଼ ଖାଇ ମୋ ପିଠିରେ ବଥ ହୋଇଅଛି । ଯେ ଏ ଛତୁ ଖାଇବ, ତା ଦେହରେ ସେହିପରି ବଥ ହେଉ ।"

ସେହି ଦିନୁ ଛତୁ ଖାଇଲେ ବଥ ହୁଏ; ତଥାପି ତାହା ଏତେ ସୁଆଦ ଯେ, ବଥ ହେଲେ ମଧ୍ୟ ଲୋକେ ଆନନ୍ଦରେ ତାହା ଖାଆନ୍ତି ।

---

## ବାଘ ଓ ମାଙ୍କଡ଼ର ଶତ୍ରୁତା

ବଣରେ ବାଘ ଆଉ ମାଙ୍କଡ଼ ପିଲାଟିଦିନୁ ସାଙ୍ଗ ହୋଇ ରହିଥିଲେ । ବାଘ ତଳେ ଥାଏ, ମାଙ୍କଡ଼ ଗଛଉପରେ ରହେ । ମାତ୍ର ଯେତେବେଳେ ମନହୁଏ, ମାଙ୍କଡ଼ ବାଘପାଖକୁ ଚାଲିଆସେ । ଦୁହେଁଯାକ ସାଙ୍ଗହୋଇ ଖେଳନ୍ତି, ବୁଲନ୍ତି, ଖାଇବାଦ୍ରବ୍ୟ ଖୋଜିଆଣି ଏକାଠି ଖାଆନ୍ତି ।

ମାଙ୍କଡ଼ ଗଛଉପରୁ ମହୁଫେଣା ଭାଙ୍ଗିଆଣେ; ଅଧେ ନିଜେ ଖାଏ, ଅଧେ ବାଘକୁ ଦିଏ । ଆମ୍ବ, କଦଳୀ ଆଦି ଫଳ ଆଣେ; ବାଘ ଓ ସେ ସାଙ୍ଗ ହୋଇ ଖାଆନ୍ତି ।

ସେହିପରି ବାଘ ହରିଣ, ଶମ୍ବର ଆଦି ପଶୁ ମାରେ; ମୁହଁରେ ଧରି ଘୋସାରି ଘୋସାରି ରହିବା ସ୍ଥାନକୁ ଆଣେ । ମାଙ୍କଡ଼କୁ ଡାକେ, "ଆସ ସଙ୍ଗାତ ଖାଇବା ।"

Digitized by srujanika@gmail.com

ମାଙ୍କଡ଼ ଗଛରୁ ଓହ୍ଲାଇ ଆସେ। ବାଘ ଓ ସେ ଏକାଠି ମିଶି ସେ ମାଂସ ଖାଆନ୍ତି ।

ଏହିପରି ପିଲା ଦିନ କଟିଗଲା । ବାଘ ଓ ମାଙ୍କଡ଼ କ୍ରମେ ବଡ଼ ହେଲେ । ସେମାନଙ୍କ ବୟସ ଯେତିକି ବେଶି ହେଉଥାଏ, ବନ୍ଧୁତା ବି ସେତିକି ବଢ଼ୁଥାଏ । ଜଣେ ଅନ୍ୟକୁ ଛାଡ଼ି ମୁହୂର୍ତ୍ତେ ହେଲେ ରହିପାରେ ନାହିଁ ।

ସେ ବଣକୁ ଗୋଟିଏ ବାଘୁଣୀ ଆସିଲା । ବାଘ ଓ ବାଘୁଣୀ ସାଙ୍ଗ ହେଲେ । ମାଙ୍କଡ଼ଟି ଏକୁଟିଆ ରହିଥାଏ । ତଥାପି ସେ ପ୍ରତିଦିନ ଗଛରୁ ଓହ୍ଲାଇ ବାଘ ପାଖକୁ ଆସେ । ବାଘ ଓ ବାଘୁଣୀ ଉଭୟଙ୍କୁ ଶଙ୍କୁଲେ, ସେମାନଙ୍କ ହାନଲାଭ ବୁଝେ ପରେ ଗଛ ଉପରକୁ ଚାଲିଯାଏ ।

ବାଘୁଣୀ ମାଙ୍କଡ଼କୁ ଜମା ଦେଖିପାରେ ନାହିଁ । ମାଙ୍କଡ଼ ତଳକୁ ଆସିଲେ ସେ ବଡ଼ ଚିଡ଼ିଚିଡ଼ି ହୁଏ; କିନ୍ତୁ ବାଘ ଡରରେ କିଛି କହେ ନାହିଁ ।

ମାଙ୍କଡ଼କୁ କିପରି ହରକତ କରିବ, ବାଘୁଣୀ ସେଥିପାଇଁ ଗୋଟିଏ ଉପାୟ ଚିନ୍ତାକଲା । ସେ ଦିନେ ବାଘକୁ କହିଲା, "ମୋର ମଣ୍ଡୁ ଖାଇବାକୁ ଭାରି ମନ ହେଉଛି, ମୋତେ ପେଟେ ମଣ୍ଡୁ ଆଣି ଖାଇବାକୁ ଦିଅ ।"

Digitized by srujanika@gmail.com

ବାଘ ତ ଗଛ ଚଢ଼ି ଜାଣେ ନାହିଁ, ସେ ମହୁ କପର ବା ଆଣିବ ?

ସେ ମାଙ୍କଡ଼କୁ ପାଖକୁ ଡାକଲା। କହିଲା, "ସାଙ୍ଗ ! ମୋ ପାଇଁ କିଛି ମହୁ ଆଣ। ବହୁତ ବେଶି ଆଣିବ। ଆମେ ଦୁହେଁ ସାଙ୍ଗ ହୋଇ ଗଲା କେତେ ଦିନ ହେଲା ଖାଇ ନାହେଁ। ତୁମେ



( ବାଘ, ବାଘୁଣୀ, ଓ ମାଙ୍କଡ଼ )

ବେଶି ମହୁ ଆଣିଲେ ବାଘୁଣୀ, ମୁଁ ଓ ତୁମେ— ତିନହେଁଯାକ ଏକାଠି ଖାଇବା।

ମାଙ୍କଡ଼ ଏଥିରେ ରାଜିହେଲା। ସେ ମହୁ ଖୋଜିବ ବୋଲି ବଣର ଚାରିଆଡ଼ ବୁଲିଲା। ବହୁତ ଜାଗା ବୁଲି ଶେଷକୁ ମହୁ- ଫେଣା ପାଇଲା। ଗୋଟାଏ ମସ୍ତବଡ଼ ଫେଣା। ମାଙ୍କଡ଼ ଭାବିଲା,

Digitized by srujanika@gmail.com

ଏଥିରେ ଯେତେ ମହୁ ଅଛି, ଆମେ ତିନିଜଣ ଖାଇଲେ ଦିନକ ମଧ୍ୟରେ ସରିବ ନାହିଁ; ତିନି ଦିନଯାଏ ଆମେ ଆନନ୍ଦରେ ଏହାକୁ ଖାଇ ପାରିବୁ ।

ଏହା ଭାବି ସେ ମହୁଫେଣା ଧରି ବାଘ ବସାକୁ ଆସିଲା । ଆଉ କିଛି ଫଳ ମଧ୍ୟ ବାଘ ପାଇଁ ଆଣିଥାଏ ।

ବାଘ ଦେଖିଲା, ମାଙ୍କଡ଼ ବଣଯାକ ବୁଲି ବୁଲି ବଡ଼ ହାଲିଆ ହୋଇଯାଇଅଛି । ମହୁମାଛି କାମୁଡ଼ାରେ ତା ମୁହଁ, ଦେହ, ହାତ ଫୁଲି ଯାଇଛି ।

ବାଘ କହିଲା, "ସାଙ୍ଗ ! ତୁମେ ଯାଅ, ନଈରେ ଗାଧୋଇ ସଫାସୁତୁରା ହୋଇ ଆସ । ତୁମେ ଗାଧୋଇସାରିଲେ ସାଙ୍ଗହୋଇ ମହୁ ଖାଇବା ।"

ମାଙ୍କଡ଼ ମହୁଫେଣାକୁ ସେଠାରେ ରଖି ଗାଧୋଇବାକୁ ଚାଲିଗଲା । ବାଘ ତାକୁ ଚାହିଁ ବସିଥାଏ ।

ଏଡ଼େ ବଡ଼ ମହୁଫେଣା ଦେଖି ବାଘୁଣୀର ଭାରି ଲୋଭ ହେଲା । ସେ ମନରେ ଭାବିଲା, "ଏ ସବୁଯାକ ଯଦି ମୁଁ ଏକା ଖାଆନ୍ତି, ତେବେ ମୋ ମନ ବୋଧହୁଅନ୍ତା । ମାଙ୍କଡ଼ ଏଥିରୁ ଖାଇଲେ ମୋ ଭାଗ ତ କମିଯିବ । ସେ ଯେପରି କିଛି ନ ପାଇବ, ତାରି ଉପାୟ କରିବି ।"

Digitized by srujanika@gmail.com

ଏହା ଭାବି ସେ ଜିଭ ଲଗାଇ ଫେଣାରୁ ଥରେ ମହୁ ଚାଖି ଦେଲା । ତାକୁ ଭାରି ସୁଆଦ ଲାଗିଲା । ସେ ଆଉ ଥରେ ଚାଖିଲା । ଏହାପରି ସେ ଯେତେ ଥର ଚାଖୁଥାଏ, ଆଉ ବେଶି ଖାଇବା ପାଇଁ ତାହାର ସେତିକି ମନ ହେଉଥାଏ । ଟିକିଏ ଟିକିଏ ଚାଖୁ ଚାଖୁ ମହୁଫେଣାରୁ ସବୁ ମହୁ ସରିଗଲା; ଖାଲି ଶୁଖିଲା ଫେଣାଟି ପଡ଼ିଥାଏ । ଏଣେ ମହୁ ଖାଇଖାଇ ବାଘୁଣୀ ପେଟ ଏପରି ଫୁଲିଗଲା ଯେ, ସେ ଆଉ ଉଠିପାରିଲା ନାହିଁ; ଗୋଟିଏ ଜାଗାରେ ପଡ଼ି ରହିଲା ।

ମାଙ୍କଡ଼ ଗାଧୋଇସାରି ଆସିଲା । ବାଘ ଓ ମାଙ୍କଡ଼ ମହୁ ଖାଇବାକୁ ଗଲେ । ବାଘୁଣୀକୁ ଡାକିଲେ । ବାଘୁଣୀ କହିଲା, "ମୋ ଦେହ ଖରାପ, ମୁଁ ମୋଟେ ଉଠିପାରୁ ନାହିଁ । ତୁମେ ଯାଅ, ମହୁ ଖାଅ । ଅଳ୍ପ ଖାଇବ । ମୋ ପାଇଁ ବେଶି ରଖି ଦେଇଥିବ । ପରେ ମୁଁ ଯାଇ ଖାଇବ ।"

ବାଘ ଓ ମାଙ୍କଡ଼ ମହୁଫେଣା ପାଖକୁ ଗଲେ, ମାତ୍ର ମହୁ କାହିଁ ? ଖାଲି ଶୁଖିଲା ଫେଣାଟାଏ ପଡ଼ିଅଛି ।

ବାଘ ଭାବିଲା, "ମାଙ୍କଡ଼ ମୋତେ ଠକିବା ପାଇଁ ଶୁଖିଲା ଫେଣାଟାଏ ଆଣିଅଛି । ସେ ମୋର ଆଉ ବନ୍ଧୁ କଅଣ ?"

Digitized by srujanika@gmail.com

ମାଙ୍କଡ଼ ମନେକଲା, "ମୋତେ ଗାଧୋଇବାକୁ ପଠାଇଦେଇ ବାଘ ମହୁତକ ଖାଇଦେଇଅଛି । କେବଳ ଶୁଖିଲା ଫେଣାକୁ ମୋ ପାଇଁ ପକାଇ ରଖିଅଛି ।"

ଉଭୟେ ଏହାପରେ ମନେମନେ ଚିନ୍ତା କଲେ, ମାତ୍ର କେହି କାହାକୁ କିଛି କହିଲେ ନାହିଁ । ମାଙ୍କଡ଼ ଭୋକଉପାସରେ ଛଟପଟ ହୋଇ ନିଜ ବସାକୁ ଫେରିଗଲା । ସେତେବେଳେ ଭାବିଲା, "ମୁଁ ବାଘକୁ ଦିନେ ହଇରାଣ କରିବି, ଏହାପରି ଭୋକଉପାସରେ ରଖିବି ।"

ଆଉ ଦିନକର କଥା । ବାଘ ଗୋଟାଏ ଶମ୍ବର ମାରିଥାଏ । ତାକୁ ବସାରେ ରଖି ବାଘ ଓ ବାଘୁଣୀ ଗାଧୋଇବାକୁ ଗଲେ । ମାଙ୍କଡ଼ ସେହି ସମୟରେ ଗଛରୁ ଓହ୍ଲାଇଆସିଲା । ସେ ଶମ୍ବର ଉପରେ ଝାଡ଼ା ଫେରିଦେଲା ।

ସେ ଥରେ ଝାଡ଼ା ଫେରୁଛି, ବାଘ ଓ ବାଘୁଣୀ ଆସିଗଲେ । ତାଙ୍କ ଆସିବା ଶବ୍ଦ ଶୁଣି ମାଙ୍କଡ଼ ଡରିଗଲା । ସେ ତରତର ହୋଇ ଗଛ ଉପରକୁ ପଳାଇଯିବାକୁ ବସିଲା, ମାତ୍ର ବାଘ ବାଘୁଣୀ ତାକୁ ଦେଖି ପକାଇଲେ ।

ବାଘ ରାଗିଯାଇ କହିଲା, "ତୁମେ ମୋହର ବନ୍ଧୁ ହୋଇ ଏପରି କାମ କଲ ?"

Digitized by srujanika@gmail.com

ଏହା ଶୁଣି ମାଙ୍କଡ଼କୁ ବଡ଼ ଲାଜମାଡ଼ିଲା । ଏତେ ଲାଜମାଡ଼ିଲା ଯେ, ସେଥିରେ ତା ମୁହଁ କଳା ପଡ଼ିଗଲା ।

ବାଘ ପୁଣି କହିଲା, "ତୁମେ ଆଉ ମୋ ପାଖକୁ ଆସିବ ନାହିଁ କି ମୁଁ ଶିକାର କରି ଆଣୁଥିବା ମାଂସ ଖାଇବ ନାହିଁ ।"

ଏ କଥା ଶୁଣି ମାଙ୍କଡ଼ ବି ରାଗିଗଲା । ସେ କହିଲା, "ତୁମେ ମୋ ଫଳ ସବୁ ଖାଇବ ନାହିଁ ।"

ସେହି ଦିନୁ ମାଙ୍କଡ଼ ଗଛରେ ରହିଲା, ବାଘ ବଣଭିତରେ ପାହାଡ଼ଗୁମ୍ଫାରେ ଲୁଚିଲା । ମାଙ୍କଡ଼ ମାଂସ ଖାଇଲା ନାହିଁ କି ବାଘ ଫଳ ଖାଇଲା ନାହିଁ । ହାବୁଡ଼ରେ ପଡ଼ିଲେ ବାଘ ମାଙ୍କଡ଼କୁ ଖାଇଯାଏ । କେଉଁଠାରେ ବଣରେ ବାଘ ଥିଲେ ମାଙ୍କଡ଼ ଚିଁ ଚିଁ ହୋବାଇ ଶିକାରୀକୁ ଜଣାଇଦିଏ, "ଏଠାରେ ବାଘ ଅଛି, ତାକୁ ମାର ।"

---

## ହଜିଯାଇଥିବା ଜିନିଷ

ଶଉର ଜାତିର ଗୋଟିଏ ଲୋକ । ତାହା ନାମ 'ନାଗନା' । ନାଗନା ଥରେ ଶଶୁରଘରକୁ ଯାଇଥିଲା । ଜୁଆଇଁଙ୍କୁ ଦେଖି ଶଶୁରଘରେ ସମସ୍ତେ ଖୁସି ହୋଇଗଲେ, ବହୁତ ଆଦର ଅଭ୍ୟର୍ଥନା କଲେ ।

Digitized by srujanika@gmail.com

ନାଗନା ଗୋଡ଼ ଧୋଇସାରି ଖାଇବସିଲା । ଶାଶୁ କେତେ ରକମର ଖାଦ୍ୟ ଆଣି ପରଷିଲେ । ତା ସାଙ୍ଗରେ ତମ୍ପା* ଥିଲା । ନାଗନା ଆଗରୁ କେବେ ତମ୍ପା ଚାଖି ନ ଥିଲା । ଯେମିତି ସେ କିଛି ତମ୍ପା ନେଇ ପାଟିରେ ପୂରାଇଛି ତାକୁ ଭାରି ଭଲ ଲାଗିଲା । ସେ ଅନ୍ୟ ଖାଦ୍ୟଦ୍ରବ୍ୟ ଛାଡ଼ି କେବଳ ତାକୁ ହିଁ ଖାଇବାକୁ ଲାଗିଲା ।

ଶାଶୁ ଦେଖିଲେ, ଜୁଆଁଇଁ ଖାଲି ତମ୍ପା ଖାଉଅଛନ୍ତି, ଆଉ କିଛି ଛୁଉଁ ନାହାନ୍ତି । ସେ ଥରଥର କରି ପାଞ୍ଚ ଥର ଆଣି ତାଙ୍କ ପାଖରେ ତମ୍ପା ପରଷିଲେ । ନାଗନା ସବୁଯାକ ଖାଇଦେଲା ।

ତମ୍ପା ଲୋଭରେ ନାଗନାର ଆଉ ଶାଶୁଘର ଛାଡ଼ିବାକୁ ମନ ହେଲା ନାହିଁ । ସେ ସେଠାରେ ଯେତେ ଦିନ ରହିଲା, ସେତେ ଦିନ ଶାଶୁ କେବଳ ତମ୍ପା ରାନ୍ଧି ଖାଇବାକୁ ଦେଲେ । ନାଗନା ଯେତେ ତମ୍ପା ଖାଉଥାଏ, ତା ମନ ସେତିକି ଲାଗିଯାଉଥାଏ ।

ଯେତେହେଲେ ତ ଶ୍ୱଶୁରଘର, କେତିଦିନ ସେଠାରେ ରହି ହେବ ନାହିଁ । ଇଚ୍ଛା ନ ଥିଲେ ମଧ୍ୟ ନାଗନା ନିଜ ଘରକୁ ଆସିବାକୁ ବାହାରିଲା । ଆସିଲାବେଳେ ଶାଶୁଙ୍କୁ ପଚାରିଲା, "ଏ ଯେଉଁ ଭାରି ଭଲ ଜିନିଷ ମୋତେ ଖାଇବାକୁ ଦେଉଥିଲ, ଏହାର ନାମ କଅଣ ?

ଶାଶୁ ହସି ହସି ଉତ୍ତର ଦେଲେ, "ତା ନାମ ତମ୍ପା ।"

---

* ମାଣ୍ଡିଆ ଚୂନାରେ ଗୁଡ଼ ଦେଇ ରନ୍ଧା ହୋଇଥିବା ଜାଉଭଳି ଖାଦ୍ୟପଦାର୍ଥ । ଏହା ଗଞ୍ଜାମ, କୋରାପୁଟ ମାଳ ଅଞ୍ଚଳରେ ବେଶି ପ୍ରଚଳିତ ।

Digitized by srujanika@gmail.com

ତାହାପରେ ଶାଶୁ ଶାଳପତ୍ରରେ କେତେକ ତମ୍ପା ବାନ୍ଧି ତା ହାତରେ ଦେଲେ । କହିଲେ, "ବାଟରେ ଖାଇବ ।"

ନାଗନା ଆନନ୍ଦ ମନରେ ଘରକୁ ଫେରିଲା । ଆସିଲାବେଳେ ମନେମନେ ଘୋଷି ହେଉଥାଏ, 'ତମ୍ପା', 'ତମ୍ପା', 'ତମ୍ପା' ।

କିଛି ବାଟ ଆସିଲାପରେ ସେ ଆଉ ଲୋଭ ସମ୍ଭାଳି ରହି-ପାରିଲା ନାହିଁ । ବାଟ ଚାଲୁଚାଲୁ ପତ୍ରପୁଡ଼ା ଫିଟାଇ ତମ୍ପା ଚାଖିଲା । ଟିକିଏ ଟିକିଏ ଚାଖୁ ଚାଖୁ ସବୁତକ ସରିଗଲା । ଶେଷରେ ପତ୍ରକୁ ଜିଭ ଲଗାଇ ଚାଟିସାରି ଫିଙ୍ଗିଦେଲା ।

ବାଟ ଚାଲିଥାଏ । ଗୋଟିଏ ନଈକୂଳରେ ଆସି ପହଞ୍ଚିଗଲା । ନଈରେ ପାଣି ନ ଥାଏ, କେବଳ ବାଲି ।

ବାଟରେ ଚାଲୁଚାଲୁ ତମ୍ପା କଥାଟା ସେ ଭୁଲିଗଲା । ସେ ଖାଇବା ଜିନିଷଟାର ନାମ କଅଣ ବୋଲି ବହୁତ ଭାବିହେଲା । ଦୁଇ ହାତରେ ମୁଣ୍ଡ କୁଣ୍ଡାଇଲା, ଉପରକୁ ଚାହିଁଲା, ତଳକୁ ଚାହିଁଲା; ମାତ୍ର ସେ ନାମଟା ଆଉ ଜମା ମନେପଡ଼ିଲା ନାହିଁ ।

ନାଗନା ବଡ଼ ବ୍ୟସ୍ତ ହୋଇ ଉଠିଲା । ସେ ଭାବିଲା, ଏହି ନଈବାଲିରେ ସେ ନାମଟା କେଉଁଠାରେ ହଜିଗଲା । ତେଣୁ ବାଲିଯାକ ଘାଣ୍ଟିବାକୁ ଲାଗିଲା । କେଉଁଠାରେ ହଜିଗଲା, ତାହା ଖୋଜିଲା ।

Digitized by srujanika@gmail.com

ଦଳେ  ବେପାରୀ ସେଠାରେ ଆସି ପହଞ୍ଚିଲେ । ସେମାନେ ତେଲ ବିକିବାକୁ ନେଉଥାଆନ୍ତି ।

ସେହି  ତେଲବେପାରୀମାନେ  ଦେଖିଲେ  ଯେ, ନାଗନା ନଣ୍ଡ ବାଲିଯାକ ଘାଣ୍ଟି ସାରିଲାଣି ।

ତାକୁ ପଚାରିଲେ, "ତୁ ବାଲିରେ କଅଣ କରୁଅଛୁ ?

ନାଗନା ଉତ୍ତରଦେଲା, "ମୋର ଗୋଟାଏ ଜିନିଷ ଏଠାରେ ହଜିଗଲା । ମୁଁ ଖୋଜିଖୋଜି ତାକୁ ପାଉ ନାହିଁ ।"

ବେପାରୀମାନେ ପଚାରିଲେ, "କି ଜିନିଷ ?"

ନାଗନାର କଅଣ ମନେ ଅଛି ଯେ, ସେ କହିବ ।

ସେ କିଛି କହିପାରିଲା ନାହିଁ ।

ବେପାରୀମାନେ ତା ସାଙ୍ଗରେ ନଈବାଲି ଓଲଟ ପାଲଟ କରି ଘାଣ୍ଟିବାରେ ଲାଗିଗଲେ । ହଜିବା ଜିନିଷ ଖୋଜିଲେ ।

ସେହି ସମୟରେ ସେମାନଙ୍କ ତେଲସବୁ ଢଳିଗଲା । ବାଲିରେ ତେଲ ମିଶିଯିବାରୁ ତାହା କାଦୁଅ ପରି ହୋଇଗଲା । ବେପାରୀମାନେ କହିଲେ, "ନଈବାଲିରେ ତେଲ ମିଶିଯିବାରୁ ଏହା ଢମ୍ପା ପରି ଦିଶୁଅଛି ।"

ନାଗନା ଢମ୍ପା ଶବ୍ଦଟା ଶୁଣିପାରିଲା । ସେ ତାଳମାରି ଆନନ୍ଦରେ ନାଚିଗଲା । ବଡ଼ପାଟିରେ କହିଲା, "ପାଇଲି, ପାଇଲି; ଯାହା ହଜାଇଥିଲି, ତାହା ପାଇଲି ।"

Digitized by srujanika@gmail.com

ଏହା କହି ସେ ନାଚି ନାଚି ନିଜ ଘର ଆଡ଼କୁ ଚାଲିଲା ।

ନାଗନା କଅଣ ହଜାଇଥିଲା, କଅଣ ବା ପାଇଲା, ତାହା ବେପାରୀମାନେ କିଛି ବୁଝିପାରିଲେ ନାହିଁ । ନାଗନା ଚାଲିଯିବାରୁ ସେମାନେ ମଧ୍ୟ ନିଜ ବାଟରେ ଚାଲିଗଲେ । ତେବେ ତେଲିଙ୍କ ହସିଇବା ହିଁ ସାର୍ ହେଲା ।

ନାଗନା ନାଚି ନାଚି ଖୁସି ମନରେ ଘରକୁ ଆସିଲା । ମନେମନେ ଘୋଷି ହେଉଥାଏ, ତମ୍ପା, ତମ୍ପା ।

ଠିକ୍ ଘରର ଦୁଆରମୁହଁରେ ଆସି ପହଞ୍ଚିଲାବେଳେ ପୁଣି ସେ ତାହା ଭୁଲିଗଲା । ବହୁତ ଭାବିଲା; କିନ୍ତୁ କିଛି ହେଲେ ତାହାର ମନେ ପଡ଼ିଲା ନାହିଁ ।

ବଡ଼ ବ୍ୟସ୍ତ ହୋଇ ସେ ଘରଭିତରେ ପଶିଲା । ତା ସ୍ତ୍ରୀକୁ କହିଲା, "ଶାଶୁ ମୋତେ ଯାହା ଖାଇବାକୁ ଦେଇଥିଲେ, ତୁ ତାହା ରାନ୍ଧି ଦେ ।" ସ୍ତ୍ରୀ ପଚାରିଲା, "ସେ କଅଣ ଦେଇଥିଲେ ?

ନାଗନା ଉତ୍ତରଦେଲା, "ସେ କଅଣ ଦେଇଥିଲେ, ତା ମୁଁ ଜାଣି ନାହିଁ, କିନ୍ତୁ ତୁ ତାହା ତିଆରିକରି ଦେ । ତାକୁ ନ ଦେଲେ ମୁଁ ଆଉ କିଛି ଖାଇବି ନାହିଁ ।"

ତା ସ୍ତ୍ରୀ ଏବେ କଅଣ କରି ଦେବ ? କିଛି ତ ଜାଣେ ନାହିଁ । ସେ ମହାଅଡ଼ୁଆରେ ପଡ଼ିଲା ।

Digitized by srujanika@gmail.com

ସ୍ତ୍ରୀ ରାନ୍ଧି ନ ଦେବାରୁ ନାଗନାର ବଡ଼ ରାଗ ହେଲା । ସେ ଗୋଟାଏ ବାଡ଼ି ଧରି ସ୍ତ୍ରୀକୁ ଖୁବ୍ ପିଟିଲା । ଘରେ ଆଉ କିଛି ଖାଇଲା ନାହିଁ ।

ସ୍ତ୍ରୀ ମାଡ଼ ଖାଇ ବାପଘରକୁ ପଳାଇଗଲା । ସେଠାରେ ଯାଇ ମାଆକୁ ପଚାରିଲା, "ତୁ ଜୁଆଇଁଙ୍କୁ କଅଣ ଖାଇବାକୁ ଦେଇଥିଲୁ କି ? ସେ ମୋତେ ତାହା ମାଗୁଛନ୍ତି; କିନ୍ତୁ ନାମ କହିପାରୁ ନାହାନ୍ତି ।"

ତା ମାଆ କହିଲା, "ମୁଁ ଚକୁଳି ରାନ୍ଧି ଖାଇବାକୁ ଦେଇଥିଲି ।"



ଏହା ଶୁଣି ସେ ଘରକୁ ଫେରି ଆସିଲା । କିଛିତ ଗୁଡ଼ାଏ ମାଣ୍ଡିଆ ବୁନା କଲା । ସେଥିରେ ଗୁଡ଼ ପକାଇ ତାହା ରାନ୍ଧିଲା । ସେ ସବୁଯାକ ଚକୁଳି ଆଣି ନାଗନା ପାଖରେ ଲୁଡ଼ାଇ ଦେଲା । କହିଲା, "ଏ ସବୁଯାକ ଖାଅ ।"

Digitized by srujanika@gmail.com

ନାଗନା ଖୁସି ମନରେ ବସି ତମ୍ପା ଖାଇଲା । ଖାଇଖାଇ ତା ପେଟ ପୂରିଗଲା । ଶେଷକୁ ପେଟ ଢୋଲପରି ବାହାରିପଡ଼ିଲା । ସେ ଆଉ ଜମା ଖାଇପାରିଲା ନାହିଁ ।

ତା ସ୍ତ୍ରୀ କହିଲା, "ସବୁଯାକ ଖାଇବାକୁ ହେବ । ସବୁ ନ ଖାଇଲେ ପହଁରମୁଠାରେ ପିଟିବି ।"

ନାଗନା ଏହା ଶୁଣି ଡରିଗଲା ।

ତା ସ୍ତ୍ରୀ ପହଁରମୁଠା ଆଣିବାକୁ ଆର ଘରକୁ ଚାଲିଗଲା । ସେହି ସମୟରେ ନାଗନା ଖାଇବାସ୍ଥାନରୁ ଉଠି ପଳାଇ ଆସିଲା । ନଈବାଲି ଭିତରେ ଗୋଟିଏ ଗାତ ଖୋଳି ତା ଭିତରେ ପଶିଗଲା । ଚାରିକଡଯାକ ବାଲି ଘୋଡ଼ାଇ ପକାଇଲା ।

ନଈ ବାଲିରେ ସେ ଗୋଟାସୁଦ୍ଧା ପୋତିହୋଇ ରହିଗଲା । ଉପରକୁ କେବଳ ମୁଣ୍ଡଟି ଦିଶୁଥାଏ ।

କ୍ରମେ ରାତି ହେଲା ।

କେତେକ ଚୋର ଗୋଟିଏ ଗ୍ରାମରୁ ନଡ଼ିଆ ଚୋରିକରି ଆଣିଥିଲେ । ସେମାନେ ନଈବାଲିରେ ବସି ତାକୁ ଭାଗ ବାଣ୍ଟିଲେ । ସମସ୍ତଙ୍କ ପିଛା ଦୁଇଟା ଲେଖାଏଁ ନଡ଼ିଆ ପଡ଼ିଲା । ଶେଷକୁ ଆଉ ଗୋଟାଏ ନଡ଼ିଆ ବଳିଲା । ତାକୁ ପୁଣି ନେବ କିଏ ।

ଚୋରଙ୍କ ଭିତରେ ବହୁତ ଯୁକ୍ତିତର୍କ ହେଲା । ଏ କହିଲା, 'ମୁଁ ନେବି', ସେ କହିଲା, 'ମୁଁ ନେବି' । ଶେଷକୁ ଠିକ୍ ହେଲା, ଏ ନଡ଼ିଆଟା ଭାଙ୍ଗି ସମସ୍ତେ ମିଶି ଏଠାରେ ଖାଇଦେବା ।

Digitized by srujanika@gmail.com

ସବୁ ଚୋର ଏ କଥାରେ ରାଜିହେଲେ । କିନ୍ତୁ ନଡ଼ିଆ ଭଙ୍ଗା ହେବ କିପରି ? ଚାରିଆଡ଼େ ତ ସରୁବାଲି ।

ସେମାନଙ୍କ ଭିତରୁ ଜଣେ କହିଲା, "ସେଠାରେ ଖଣ୍ଡେ ପଥର ପଡ଼ିଅଛି; ଚାଲ ତାହାରି ଉପରେ ନଡ଼ିଆ ଭାଙ୍ଗିବା ।"

ସମସ୍ତେ ନଡ଼ିଆ ଧରି ପଥର ପାଖକୁ ଗଲେ । ପଥର ଉପରେ ନଡ଼ିଆକୁ ପିଟି ଦେଇଅଛନ୍ତି, ପଥର ପାଟିକରି ଉଠିଲା, "କିଏ ରେ ?"



( ନାଗଜା ମୁଣ୍ଡରେ ନଡ଼ିଆ ବାଡ଼ିଆ )

ଆଉ ଚୋରମାନେ ସେଠାରେ ରହୁଛନ୍ତି ? ପ୍ରାଣଭୟରେ କିଏ କୁଆଡ଼େ ଯେ ପଳାଇଗଲେ, ତାହାର ଠିକଣା ହେଲା ନାହିଁ । ସେମାନେ ଭାବିଲେ, ଭୂତ ଆମଙ୍କୁ ଖାଇଯିବ ।

Digitized by srujanika@gmail.com

ପ୍ରକୃତରେ ସେ ଭୂତ ନୁହେ କି ପଥର ନୁହେ; ତାହା ନାଗନାର ମୁଣ୍ଡ। ନାଗନା ସେହିଠାରେ ବାଲିରେ ପୋତିହୋଇ ମୁଣ୍ଡଟି ଉପରକୁ ବାହାର କରିଥାଏ।

ଚୋର ସବୁ ପଳାଇଯିବାରୁ ନାଗନା ଝିଙ୍ଗମୋଡ଼ି ହୋଇ ଗାତଭିତରୁ ବାହାରିଲା। ଚୋରମାନେ ପକାଇଦେଇ ଯାଇଥିବା ନଡ଼ିଆତକ ଗୋଟାଇ ଲୁଗାକାନିରେ ପୁରାଇଲା। ତାକୁ ମୁଣ୍ଡାଇ ଘରକୁ ଆସିଲା।

ତା ସ୍ତ୍ରୀକୁ କହିଲା, "ଦେଖ, ତୋ ପାଇଁ କେତେ ନଡ଼ିଆ ଆଣିଅଛି। ତୁ ଏହାକୁ ଭାଙ୍ଗି ଖା, କିନ୍ତୁ ମୋ ପାଇଁ ଭର୍ତ୍ତା ତିଆରି କରି ଦେ। ଦେଖ, ଯେପରି ବହୁତଗୁଡ଼ାଏ ନ କରୁ। ବେଶି ହେଲେ ମୁଁ ଖାଇପାରିବ ନାହିଁ ଯେ।"

ନଡ଼ିଆତକ ବିକି ନାଗନା ଆଉ ତା ସ୍ତ୍ରୀ ଆନନ୍ଦରେ ଚଳିଲେ। ନାଗନା ପାଇଁ ପ୍ରତିଦିନ ଭର୍ତ୍ତା ତିଆରି ହେଲା।

---

## ଫଳପୋକ

ଫଳସବୁ ସଢ଼ି ପଚିଗଲେ ସେଥିରେ ପୋକ ଦେଖାଯାଆନ୍ତି। ସେ ପୋକ ପୁଣି ଗୋଟାଏ ନୁହେଁ କି ଦୁଇଟା ନୁହେଁ, ଏକାବେଳକେ ମେଞ୍ଚା ମେଞ୍ଚା।

Digitized by srujanika@gmail.com

ଫଳ ଦେହକୁ ସେ ପୋକ ଆସିଲେ କୁଆଡ଼ୁ ?



( ହିଅ ଫଳ ଗୋଟାଉଛୁ )

ମହାପ୍ରଭୁ ସଂସାରରେ ମନୁଷ୍ୟଙ୍କୁ ସୃଷ୍ଟି କଲେ । ମନୁଷ୍ୟମାନେ ଖାଇବେ କଅଣ ? ବଞ୍ଚିବେ କପର ?

ତେଣୁ ମହାପ୍ରଭୁ ସେମାନଙ୍କୁ ଜମି ଚ୍ଷକରିବା କଥା ଶିଖାଇଲେ । ଲୋକମାନେ ମାଟି ଖୋଳଲେ, ବିହନ ବୁଣିଲେ । ବେଳକାଳ ଜାଣି ଇନ୍ଦ୍ରଦେବତା ପାଣି ବର୍ଷିଲ୍ । ସେହ ପାଣି ପାଇ

Digitized by srujanika@gmail.com

ବୀହନରୁ ଗଛ ହେଲା, ତାହା ବଢ଼ିଲା । ଶେଷକୁ ଧାନ, ମାଣ୍ଡିଆ, ଘଅ ଆଦି ଫସଲ ଫଳିଲା । ଲୋକମାନେ ତାକୁ ପେଟ ପୂରାଇ ଖାଇ ଆନନ୍ଦରେ ରହିଲେ ।

ଏହାପରେ ବହୁ ଦିନ କଟିଗଲା । ସେତେବେଳେ ଲୋକେ ଛଳ କପଟ ଜାଣି ନ ଥିଲେ । ସେମାନେ ଅନ୍ୟକୁ ହିଂସା କରୁ ନ ଥିଲେ । ସବୁବେଳେ ଧର୍ମରେ ଚାଲୁଥିଲେ ।

ମାତ୍ର କେତେଦିନ ଗଲାପରେ ସେମାନଙ୍କ ମନକୁ ପାପ ଛୁଇଁଲା । ନିଜେ କପର ଦେଖି ଖାଇବେ, ନିଜେ ଖୁସିରେ ରହିବେ—, ଏହି କଥା ସେମାନେ ଭାବିଲେ । ତେଣୁ ଯେ ଯାହାର ଫସଲ ଲୁଚାଇ ରଖିଲେ, ଅନ୍ୟକୁ ଖାଇବାକୁ ଦେଲେ ନାହିଁ । କିଏ ଖାଇବାକୁ ନ ପାଇ ମାଗି ଆସିଲେ ତାକୁ ମାରି ଗୋଡ଼ାଇଲେ ।

ତେଣୁ ପୃଥିବୀରେ ଅଧର୍ମ ମାଡ଼ିଗଲା ।

ମହାପ୍ରଭୁ ଭାବିଲେ, "ଲୋକଙ୍କୁ ଦଣ୍ଡ କରିବାକୁ ଦରକାର । ତା ନ ହେଲେ ସଂସାର ଉଚ୍ଛନ୍ନ ହୋଇଯିବ ।"

ସେ ଇନ୍ଦ୍ରକୁ କହିଲେ, "ତୁମେ ବର୍ଷା କର ନାହିଁ ।"

ମହାପ୍ରଭୁଙ୍କ କଥା ମାନି ଇନ୍ଦ୍ରଦେବତା ଆଉ ପାଣି ଦେଲା ନାହିଁ । ମେଘ ବର୍ଷା ନ ହେବାରୁ ପୃଥିବୀରେ ପାଣି ମିଳିଲା ନାହିଁ । ଯେଉଁଠାରେ ଯାହା ପାଣି ଥିଲା, ତାହା ଶୁଖିଗଲା ।

ଜମିରେ କିଛି ଫସଲ ହେଲା ନାହିଁ ।

Digitized by srujanika@gmail.com

ବର୍ଷେ ଗଲା । ଲୋକେ ଯାହା ଲୁଚାଇ ଖାଦ୍ୟଦ୍ରବ୍ୟ ରଖିଥିଲେ, ତାହା ଖାଇ ବଞ୍ଚିଲେ ।

ପୁଣି ଆରବର୍ଷକୁ ସେହି କଥା । ବର୍ଷା ଦେଖା ନାହିଁ ।

ଏହିପରି ସାତ ବର୍ଷ ଯାଏ ଲାଗି ରହିଲା । ଲୋକମାନେ ଯାହା ଲୁଚାଇ ରଖିଥିଲେ, ସେସବୁ ସରିଗଲା । ସେମାନେ ଆଉ ଖାଇବେ କଅଣ—ଏହି ଚିନ୍ତା କଲେ ।

ଶେଷକରେ ସମସ୍ତେ ଛଟପଟ ହେଲେ । ଜଣେ ଅନ୍ୟକୁ ଦେଖିଲେ ତାକୁ ମାରି ଖାଇଗଲା । ତେଣୁ ମନୁଷ୍ୟ ମନୁଷ୍ୟକୁ ଦେଖି ଲୁଚିଲେ, କେହି କାହାରିକୁ ଦେଖାଦେଲେ ନାହିଁ । ଘର ଦ୍ୱାର ଛାଡ଼ି ସମସ୍ତେ ଲୁଚି ଲୁଚି ବଣଭିତରେ ବୁଲିଲେ ।

ଗୋଟିଏ ଗ୍ରାମରେ ପଚାଶ ଘର ଚଣ୍ଡାଳ ରହୁଥିଲେ । ସେମାନେ ଖାଦ୍ୟଦ୍ରବ୍ୟ ନ ପାଇ ଗାଈ ମଇଁଷି ମାରି ଖାଇଲେ ।

ତାଙ୍କର ଯେତେ ଗାଈ ମଇଁଷି ଥିଲେ, ସବୁ ସରିଗଲେ ।

ଶେଷକୁ ଚଣ୍ଡାଳମାନେ ଘରଦ୍ୱାର ଛାଡ଼ି ଏଣେତେଣେ ବୁଲିଲେ । ଯେଉଁଠାରେ ଯାହା ଦେଖିଲେ, ତାକୁ ଧରି ଖାଇଲେ । ପଶୁ, ପକ୍ଷୀ, ମନୁଷ୍ୟ—କାହାରିକୁ ବାଦ୍ ଦେଲେ ନାହିଁ ।

ମନୁଷ୍ୟ ମାଂସ ଖାଇଖାଇ ସେ ଚଣ୍ଡାଳସବୁ 'ମଣିଷଖିଆ' ହୋଇଗଲେ । ଆଉ କିଛି ଦ୍ରବ୍ୟ ତାଙ୍କୁ ସ୍ୱାଦ ଲାଗିଲା ନାହିଁ । ସବୁ ବେଳେ ମନୁଷ୍ୟଙ୍କୁ ଖୋଜି ମାରି ଖାଇଲେ ।

Digitized by srujanika@gmail.com

ଏକଥା ଚାରିଆଡ଼େ ରାଷ୍ଟ୍ର ହୋଇଗଲା । ଲୋକମାନେ ତାଙ୍କ ନାମ ଶୁଣି ଡରିଗଲେ, କୁଆଡ଼େ ପଳାଇଯାଇ ଲୁଚିଲେ ।

ଚଣ୍ଡାଳମାନେ ଗାଁ ଗାଁ ବୁଲି ମନୁଷ୍ୟ ମାରି ଖାଇଲେ । ସେ ଯେଉଁ ଗ୍ରାମକୁ ଗଲେ, ସେ ଗ୍ରାମ ପଦା ହୋଇଗଲା ।

ଗୋଟିଏ ଗ୍ରାମରେ କେବଳ ଛଅ ଜଣ ସ୍ତ୍ରୀଲୋକ ଥିଲେ । ସେମାନେ ଶୁଣିଲେ ଯେ, ଚଣ୍ଡାଳସବୁ ପାଖ ଗ୍ରାମକୁ ଆସିଗଲେଣି । ଭୟରେ ସେମାନେ ଛାନିଆଁ ହୋଇଗଲେ ।

ସ୍ତ୍ରୀଲୋକ, ବେଶି ଦୂରକୁ ତ ପଳାଇ ଯାଇପାରିବେ ନାହିଁ । କଅଣ କରିବେ, କେଉଁଠାରେ ଲୁଚିବେ—କିଛି ଭାବି ଠିକ୍ କରି ପାରିଲେ ନାହିଁ ।

ଶେଷରେ ଛଅଜଣଯାକ ଗାଁଠାକୁରାଣୀଙ୍କ ପାଖରେ ଅଧିଆ ପଡ଼ିଲେ ।

ଠାକୁରାଣୀ ସେମାନଙ୍କୁ ଦେଖାଦେଇ ବର ଯାଚିଲେ ।

ସେମାନେ କହିଲେ, "ଆମର ଆଉ କିଛି ବର ଦରକାର ନାହିଁ । ଚଣ୍ଡାଳମାନେ କାଲି ଆମ ଗ୍ରାମକୁ ଆସିଯିବେ । ତାଙ୍କ ହାତରୁ ଆମଙ୍କୁ ରକ୍ଷାକର । ଆମେ କେଉଁଠାରେ ଲୁଚିବୁ, ସେହି ବାଟ ବତାଇ ଦିଅ ।

ଦେବୀ ଦେଖିଲେ; ପାଖରେ ଗୋଟିଏ ବେଲଗଛ ଅଛି । ସେ ଗଛରେ ଛଅଗୋଟି ବେଲ ଓହଳିଛି ।

ଠାକୁରାଣୀ ସେ ବେଲକୁ କଣା କରିଦେଲେ । ତା ଭିତରେ ଛଅଜଣଯାକ ସ୍ତ୍ରୀଲୋକଙ୍କୁ ପୂରାଇ ବାଟ ବନ୍ଦ କରିଦେଲେ ।

Digitized by srujanika@gmail.com

ପରଦିନ ଚଣ୍ଡାଳମାନେ ଅସି ଗ୍ରାମରେ ପହଞ୍ଚିଲେ । ସେମାନେ ଦେଖିଲେ, ଗ୍ରାମରେ ଜଣେ ହେଲେ ମନୁଷ୍ୟ ନାହାନ୍ତି; କିନ୍ତୁ ମନୁଷ୍ୟ-ବାସନା ଆସୁଅଛି ।

ସେମାନେ ସବୁ ଘର ଖୋଜିଲେ; ଗଳିକନ୍ଦି ଯାହା ଯେତେ ଥିଲା, ସବୁ ଦେଖିଲେ । କାହାରିକୁ ପାଇଲେ ନାହିଁ । ମାତ୍ର ଗ୍ରାମ ଛାଡ଼ି ଚାଲିଯିବାକୁ ମନ ହେଉ ନ ଥାଏ ।

ଏ ବାସନା ଆସୁଛି କୁଆଡ଼ୁ ? ମନୁଷ୍ୟମାନେ କେଉଁଠାରେ ଲୁଚିଅଛନ୍ତି—ଏକଥା ଜାଣିବାପାଇଁ ସେମାନେ ବଡ଼ ଅଥୟ ହୋଇ ଉଠିଲେ ।



( ଇନ୍ଦ୍ର ବର୍ଷା କରୁଛନ୍ତି )

Digitized by srujanika@gmail.com

ମହାପ୍ରଭୁ ଦେଖିଲେ, ଏପରି ଦୁର୍ଭିକ୍ଷ ପଡ଼ିଲେ ସଂସାର ଉଚ୍ଛନ୍ନ ହୋଇଯିବ । ବହୁ କଷ୍ଟରେ ସେ ଯେଉଁ ସୃଷ୍ଟି ତିଆରି କରିଛନ୍ତି, ତାହା ଲୋପ ପାଇଯିବ । ପୁଣି ଏ ଚଣ୍ଡାଳ ରହିଲେ ତ ଅବସ୍ଥା ଆହୁରି ଖରାପ ।

ସେ ଇନ୍ଦ୍ରଙ୍କୁ ଆଦେଶ ଦେଲେ, "ତୁମେ ମର୍ତ୍ତ୍ୟକୁ ଯାଅ, ମେଘ ବର୍ଷା କର । ଚଡ଼ଚଡ଼ି ପକାଇ ଏ ଚଣ୍ଡାଳମାନଙ୍କୁ ମାରିଦିଅ ।"

ଇନ୍ଦ୍ର ସାଙ୍ଗେସାଙ୍ଗେ ମର୍ତ୍ତ୍ୟକୁ ଆସିଗଲେ । ଅଳ୍ପ ଉଚ୍ଚରେ ରହି ପାଣି ବର୍ଷିଲେ । ଗୋଟାଏ ଚଡ଼ଚଡ଼ି ପକାଇଲେ ଯେ ସେଥିରେ ମଣିଷଖିଆ ଚଣ୍ଡାଳଯାକ ମରିଗଲେ ।

ବର୍ଷା ହେବାରୁ ଫସଲ ହେଲା, ପୁଣି ସମସ୍ତଙ୍କୁ ଖାଇବାକୁ ମିଳିଲା । ଲୋକମାନେ ସୁସ୍ଥ ହେଲେ ।

ଯେଉଁ ବେଲଭିତରେ ସ୍ତ୍ରୀଲୋକମାନେ ଲୁଚିଥିଲେ, ଗ୍ରାମଦେବତୀ ଗଛରୁ ସେ ବେଲ ତୋଳିଆଣିଲେ । ସ୍ତ୍ରୀଲୋକମାନଙ୍କୁ ସେଥିରୁ ବାହାର କରିବେ ବୋଲି ସବୁ ଫଳ ଭାଙ୍ଗି ଦେଲେ । ମାତ୍ର ଏ କଅଣ ? ସ୍ତ୍ରୀଲୋକମାନେ ଗଲେ କୁଆଡ଼େ ? ପ୍ରତ୍ୟେକ ଫଳରୁ ଗୋଟିଏ ଲେଖାଏଁ ପୋକ ବାହାରି ବୁଲିଲେ ।

ଠାକୁରାଣୀଙ୍କ ମନରେ ବଡ଼ କଷ୍ଟ ହେଲା । କିନ୍ତୁ ଆଉ କରିବେ କଅଣ ?

ପୋକ ସେହି ଦିନୁ ସୃଷ୍ଟି ହେଲେ ।

———

Digitized by srujanika@gmail.com

# "ହୁକେ ହୁକେ ହେ।"

୯

ଏ ପୃଥିବୀ ତିଆରି ହେଲାପରେ ପାଣିପବନ, ଗଛଲତା, ଜୀବଜନ୍ତୁ ସୃଷ୍ଟି ହେଲେ । ମନୁଷ୍ୟର ସୃଷ୍ଟି ହେଲା ସମସ୍ତଙ୍କ ପଛରେ । ପୃଥିବୀରେ ଦଳଦଳ ହୋଇ ମନୁଷ୍ୟ ବୁଲିଲେ । ଏଠି ସେଠି ଘର କରି ରହିଲେ ।

ସେତେବେଳେ ଗାଧୋଇବା କି ଖାଇବା କଥା ଲୋକେ ଜାଣି ନ ଥିଲେ; ସବୁବେଳେ ରୋଗରେ ପଡ଼ୁଥିଲେ; ବଡ଼ କଷ୍ଟପଣ ହେଉଥିଲେ ।

ମହାପ୍ରଭୁ ହିଁ ଏ ପୃଥିବୀ ତିଆରି କରିଛନ୍ତି; ସେ ଏହାର ମାଲିକ । ସେ ଦେଖିଲେ, ମନୁଷ୍ୟଗୁଡ଼ିକ ଗାଧୋଉ ନାହାନ୍ତି କି ଖାଉ ନାହାନ୍ତି । ତାଙ୍କର ଏ ପ୍ରକୃତି ବଦଳାଇବା ଦରକାର ।

ସେ ତାଙ୍କ ଦୂତ ବଳୁଆକୁ ପାଖକୁ ଡାକିଲେ । ତାକୁ କହିଲେ, "ତୁ ମର୍ତ୍ତ୍ୟକୁ ଯା; ସେଠାରେ ଲୋକଙ୍କୁ କହିବୁ, ସେମାନେ ଦିନକ ଭିତରେ ତିନିଥର ଗାଧୋଇବେ ଏବଂ ଥରେ ଖାଇବେ ।"

ବଳୁଆର କାଳେ ଏ କଥାଗୁଡ଼ାକ ମନରେ ରହିବ ନାହିଁ, ସେଥିପାଇଁ ମହାପ୍ରଭୁ ଥର ଥର କରି ଚାରିଥର ବତାଇ କହିଲେ । ଶେଷରେ ପଚାରିଲେ, "ମୁଁ ଯାହା କହିଲି, ତାହା ମନେ ରହିଲା ତ ।"

ବଳୁଆ ଉତ୍ତର ଦେଲା, "ହଁ ମହାପ୍ରଭୁ, ଠିକ୍ ମନରେ ରହିଅଛି । ମୁଁ ମର୍ତ୍ତ୍ୟକୁ ଯାଇ ଲୋକମାନଙ୍କୁ ଏ କଥା କହିବି ଓ ସଙ୍ଗେ ସଙ୍ଗେ ଫେରି ଆସିବି ।"

Digitized by srujanika@gmail.com

ବଲୁଆ ସ୍ୱର୍ଗରୁ ମର୍ତ୍ତ୍ୟକୁ ଆସିଲା । ସେତେବେଳେ ସେ ଆଣିଥିବା କଥା ବରାବର ମନେ ମନେ ଘୋଷି ହେଉଥାଏ ।

ବାଟରେ ଛଅ ଦିନ କଟିଗଲା । ମର୍ତ୍ତ୍ୟରେ ପହଞ୍ଚିବାକୁ ଆଉ ଗୋଟିଏ ଦିନ ବାକି । ଏଠାରେ ପହଞ୍ଚିଗଲେ ମହାପ୍ରଭୁଙ୍କ ବାର୍ତ୍ତା ଲୋକଙ୍କୁ ଦେଇ ସେ ଗୋଟାଏ ବଡ଼ ଦାୟିତ୍ୱରୁ ରକ୍ଷା ପାଇବ ।

କିନ୍ତୁ ଶେଷଦିନ ସମସ୍ତ ଓଲଟପାଲଟ ହୋଇଗଲା । ହଠାତ୍ ଦଳେ ଚଢ଼େଇ ମର୍ତ୍ତ୍ୟରୁ ଆକାଶକୁ ଉଡ଼ିଗଲେ । ଉଡ଼ିଗଲା ବେଳେ ଫଡ଼ଫଡ଼ ଶବ୍ଦ ହେଲା; ପୁଣି ସେମାନେ କେଁ କଟର ବୋବାଉଥାନ୍ତି ।

ଦୈବଯୋଗ ତ । ଚଢ଼େଇଗୁଡ଼ାକ ବଲୁଆ ପାଖ ଦେଇ ଉଡ଼ିଗଲେ । ବଲୁଆ ସେ ଶବ୍ଦ ଶୁଣି ଭୟରେ ଥରି ଉଠିଲା । ସେ ଏତେଦୂର ଡରିଗଲା ଯେ, ମନରେ ଯାହା ଘୋଷି ହେଉଥିଲା, ସେ କଥା ତାହା ମନରୁ ଏକାବେଳକେ ପାଶୋରି ଗଲା ।

ସେ ମର୍ତ୍ତ୍ୟରେ ଆସି ଓହ୍ଲାଇଲା । ମାତ୍ର ଭଗବାନ ଯେଉଁ କଥା କହିଥିଲେ, ତାହା ସେ ଭୁଲିଗଲାଣି । ସେ ଆଉ କରିବ କଅଣ ? ବହୁତ ଭାବିଲା; କିନ୍ତୁ କିଛି ହେଲେ ମନରେ ପଡ଼ିଲା ନାହିଁ ।

ବଲୁଆ ବୁଲିବୁଲି ଯାଇ ଗୋଟିଏ ଗାଆଁରେ ପହଞ୍ଚିଲା । ଗାଁର ପ୍ରଧାନ ବ୍ୟକ୍ତି ପ୍ରଥମେ ବଲୁଆକୁ ଭେଟିଲା, ତାକୁ ଖୁବ୍ ଆଦରକଲା । ପଚାରିଲା, "ତୁମେ କିଏ ? କେଉଁଠାରୁ ଆସିଅଛ ?"

ବଲୁଆ କହିଲା, "ମହାପ୍ରଭୁ ସ୍ୱର୍ଗରୁ ମୋତେ ତୁମମାନଙ୍କ ପାଖକୁ ପଠାଇଛନ୍ତି ।"

Digitized by srujanika@gmail.com

ପ୍ରଧାନ ପ୍ରଶ୍ନ କଲା, "କାହାଁକୁ ପଠାଇଛନ୍ତି ? ଆମ ପାଇଁ କି ବାର୍ତ୍ତା ଦେଇଛନ୍ତି ?"

ବିଲୁଆ ର ତ କିଛି ମନେ ନାହିଁ; ସେ କହିବ ବା କଅଣ ? ତେଣୁ କିଛି ନ କହି ଚୁପ୍‌ହୋଇ ରହିଲା ।



ପ୍ରଧାନ ବୁଢ଼ା ଥରଥର କରି ଦୁଇଥର ପଚାରିଲା । ଶେଷକୁ ବିଲୁଆ କହୁଚ ଭାବିଚନ୍ତ ଉତ୍ତର ଦେଲା, "ମହାପ୍ରଭୁ କହୁଛନ୍ତି, ତୁମେମାନେ ପ୍ରତିଦିନ ଥରେ ଗାଧୋଇବ, ତିନିଥର ଖାଇବ ।"

ପ୍ରଧାନ ବୁଢ଼ା ସେହି କଥା ଗ୍ରାମରେ ପ୍ରଚାର କରିଦେଲା । ଲୋକମାନେ ଯାଇ ଥରେ ଗାଧୋଇ ଆସିଲେ; ଥରଥର କରି ତିନି ଥର ଖାଇଲେ ।

Digitized by srujanika@gmail.com

ଖାଇବା ସ୍ୱାଦ ପାଇ ସେମାନେ ଭାରି ଖୁସି ହୋଇଗଲେ ।

ବିଲୁଆ ଦେଖିଲା ଯେ, ଲୋକମାନେ ଏହି ବାର୍ତ୍ତାରେ ବେଶ ଆନନ୍ଦିତ । ସେ ଗ୍ରାମ ଛାଡ଼ି ବିଲୁଆ ଅନ୍ୟ ଗ୍ରାମକୁ ଚାଲିଗଲା । ସେଠାରେ ମଧ୍ୟ ସେହି କଥା ପ୍ରଚାର କଲା, "ମହାପ୍ରଭୁ କହିଅଛନ୍ତି, ଥରେ ଗାଧାଅ ଓ ତିନିଥର ଖାଅ ।"

ସମସ୍ତେ ବିଲୁଆ କଥା ମାନି ଚାଲିଲେ । ଦିନକ ଭିତରେ ଥରେ ଗାଧୋଇଲେ, ତିନିଥର ଖାଇଲେ, କେହି କେହି ତିନି ଥରରୁ ବେଶି ବି ଖାଇଲେ ।

ମହାପ୍ରଭୁ ଏକଥା ଜାଣିଲେ । ସେ ବିଲୁଆ ଉପରେ ଖୁବ୍ ରାଗିଲେ । ତାକୁ କହିଲେ, "ମୁଁ ତୋତେ ଚାରିଥର କହିଲି, ତଥାପି ତୁ ମନେରଖି ପାରିଲୁ ନାହିଁ । ସେଇଥିଲାଗି ତୋତେ ଅଭିଶାପ ଦେଉଛି, ତୁ ପ୍ରତିଦିନ ରାତିରେ ଚାରିଥର ଭୁକ ହେଉଥିବୁ ।"

ସେହିଦିନୁ ବିଲୁଆମାନେ ପ୍ରତିଦିନ ରାତିରେ ଚାରିଥର ବଡ଼ ପାଟିରେ ଭୁକନ୍ତି, "ହୁକେ ହୁକେ ହୋ ।"

———

Digitized by srujanika@gmail.com